କବି ଶ୍ରୀ ବୈଷ୍ଣବପାଣିଙ୍କ ରଚିତ

# ରଙ୍ଗସଭା ସୁଆଙ୍ଗ ।

## କଂସବଧ ଚରିତ ।

ଶ୍ରୀ ଗୋବିନ୍ଦସାହୁ ଓ ଚିନ୍ତାମଣି ସାହୁଙ୍କ ଦ୍ୱାରା
ବିଂଶବାର ପ୍ରକାଶିତ ।

ଅରୁଣୋଦୟ ଯନ୍ତ୍ରାଳୟର ମେସିନ୍‌ଯନ୍ତ୍ରେ ମୁଦ୍ରିତ ।



PRINTED BY N. N. SAHOO
at the Arunodaya Press
CUTTACK
1925

ମୂଲ୍ୟ ଟ ୦ ୵ ଦୁଇଅଣା ମାତ୍ର ।






ସୁମନେ ଶୁଣ ସୁଜନେ ଶ୍ରୁତି ହେର ସୁଗୀତ । ସୁଗତି ଲଭିଲେ ଶୁକ କହନ୍ତି ପଣ୍ଡିତ । ପଦ । ବସୁଦେବ ବ୍ରହ୍ମାସୁତ, କହିଲେ ଯେଉଁ ସୁତତ୍ତ୍ୱ । ସୁକବିତାଭାବେ କବି କହି ନାମି ଅଚ୍ୟୁତ । ୧ । ସୁବାହୁ ଦ୍ୱାପରେ ସୁଣ, ଶୁଣିଲେ ଯଦୁରାଜନ । ସୁଦମଲ ହୃଦେ ସୁଖେ କହିଲେ ଅବଧୂତ ॥ ସୁରସୁର ଯେ ନରଗଣ, ବାସ କରେ ଅନୁସରେ । ସୁଭକ୍ତି ଉଦ୍ଧବ ସେବ ପାଇଲେ ମୁକ୍ତିପଥ । ସୁରଦର୍ପ ଦଳା କଂସ, ନାଶିଲେ ଜାତ ଶ୍ରୀବତ୍ସ । ସୁସଙ୍ଗୀ ବୈଷ୍ଣବ ସେବ ରଚିବ ସୁ-ସଙ୍ଗୀତ । ୪ ।

## ସଖୀମାନଙ୍କର ଗୀତ ।

କେତେ ନଟକୁଟ ଜାଣୁ ଶ୍ରୀଗଉଡ଼କୁଳିଆ ରେ । ବ୍ରଜଯୁଥ କଳଙ୍କିଆ କାଇଁମାଳିଆ । କୃଷ୍ଣ । କାଇଁମାଳିଆ ରେ । ପଦ । ଯିବ ଯମୁନାପାଣିକୁ, ନ ଧର ମୋର ପାଣିକି । ସଖୀରେ ନେଉ ଟାଣିକି ଯମୁନାକୂଳିଆ ରେ । ୧ । ଗୋଧନ ବାହୁଡ଼ା ବେଳେ, ଶିରେ ଖୋଷି ଯାମୁଡାଳେ । ନାଚୁ ବ୍ରଜଯୁଥ ମେଳେ ବରଜଧୂଳିଆ ରେ ॥ ଗୋପ ଯୁବତୀଙ୍କି ଦେଖି, ଟାହିକରୁ ଭୁ କାହିଁକି । ଠାରେ ଦେଉଥାଉ ଆଖି କଦମ୍ବମୂଳିଆ ରେ । ୩ । ଗୀତେ କହେ ଦୀନକୃଷ୍ଣ, ବାଟେରେ ନ କର ହଟ । କରୁଅଛ ଦୃ-ଆକଟ ଘନଶ୍ୟାମଳିଆ ରେ । ୪ ।

କଂସ ଓ ମନ୍ତ୍ରୀର ସଭା ମଧ୍ୟେ ପ୍ରବେଶ ।

କେଡ଼େ ଶୋଭାରେ ମୋ ମଥୁରା କଟକ । ଛନ୍ଦ ତତ୍ପର ଆଡେଣୀ ଆଳଟରେ କରୁଅଛୁ ଜନ ମନ ଅଟକ । ପଦ । ସ୍ୱର୍ଣ୍ଣଘଟ ପୂର୍ଣ୍ଣ ଜଳରେ ହୋଇଛି, ରମ୍ଭାତରୁ ତହିଁ କ ଶୋଭା ପାଉଛି । ଚୂତଡାଳପରେ ଶୋଭେ ମାଳ ମାଳ ତେଲ ଗୁନ୍ଥା ଝୋଲେଖ ଝିଟକ ॥ କଳାଧଳା ହସ୍ତୀ ଓଟ ଅଶ୍ୱ ଗାଈ, ଦଳେ ଦଳେ ଶାଳେ ଛନ୍ତି ପୂର୍ଣ୍ଣ ହୋଇ । ପତାକା ଦହଦ୍ଦ ଶୋଭେ ଧାଡ଼ ଧାଡ଼ ସିଂହ-ଦରଜାରେ ରନ୍‌ଫାଟକ ।୨। ଏତେ ସମ୍ପଦରେ ପୂରିଅଛୁ ପୁରୀ, ଦେଖୁଁ ୨ ହେଲେ ଗଉଡେ ଭିଗାରୀ । କହେ ବଇଷ୍ଣବ ବଷ୍ଣୁ କ କଟିବ କରେ ଥାଉଁ ଥାଉଁ ଖଣ୍ଡା ପଟକ । ୩ ।



ଦ୍ୱାରୀ ଆସିବା ଗୀତ ।

ଆସ କଏ ଯିବରେ କଲିକତାକୁ ଚାଲ । ଟିକଟ କାଟିବା ରେଲରେ ବସିବା ଦେଖିବା ହାବଡ଼ାପୋଲ୍ ରେ । ପଦ । ବସା ଘର କରିବା ଯାଇଁ, ହରିସିଙ୍ଗି ପଡ଼ାରେ ଭାଇ । ରହି କିଛିଦିନ ଅଯୁ କରି ମନ ଜାଣିବା ଫୁଲେଲ୍ ତେଲ ରେ ।୧। ଝୋଟ ମୁଣ୍ଡା-ଇବା ମୁଣ୍ଡରେ, ଝୋଟ ପଶିଯିବ ତୁଣ୍ଡ ରେ । ପେଟପାଇଁ ଯେବେ ଖଣ୍ଟପଣ କଲ ଜେଏଲରେ ଘଣା ପେଲ ରେ ।୨। ହେଲେ ଟଙ୍କା ପଇସା ମୋର । ମନେ ଆସି ପଡ଼ିବ ଘର । ଗଙ୍ଗାଘାଟେ ବୁଲି ଯାଉଥିବେ ଚାଲି ଦେଖିବା ଖାଜାଞ୍ଚିପଲ ରେ । ୩ । ହାତେ ଧରି ଫିରିଙ୍ଗିଛତା, ଗୋଡ଼େ ମାଡ଼ି ଚଢାଉ ଯୋତା । ବଇଷ୍ଣବ କହ ଗଣ୍ଠିରି ମୁଣ୍ଡାଇ ସଡ଼କରେ ହେବା ଗେଲ ରେ । ୪ ।

---

ନାରଦଙ୍କ ପ୍ରବେଶ ଓ କଂସ ପ୍ରତି ଉକ୍ତି ।

ଆରେ କଂସାସୁର ଗଲା କି ପାଶୋରି ବସିଛୁ କାହିଁ ଟଙ୍କା ରେ । ତୋତେ ମାରିବାକୁ ଜନମିଛି ଗୋପେ ସେ ମୁରଲୀ ଫୁଙ୍କା ରେ ॥ ଯେଉଁ କନ୍ୟାକଗାଟି ହସ୍ତୁ ଗଲା ଛୁଟି ଶିଳାରେ ପିଟନ୍ତେ ରେ ।

ସେହି ଯୋଗମାୟା କହିଗଲା ଯାହା ନାହାଁକ ତୋ ଶତ୍ରୁ ରେ ॥
ଉଗ୍ରସେନ ବୀର ପ୍ରହରୀ ତୋହର ନଗରେ ଫେରଇ ରେ ।
ଯେତେ ନରନାରୀ ସର୍ବେ ତୋ ବଇରୀ ଚିହ୍ନି ଥାଅ ତୁହି ରେ ॥
ଯେତେକ ଅମର ଶରଣ ତୋହର ଶତ୍ରୁ ସର୍ବେ ଜାଣ ରେ ।
ମରଣକୁ ତୋର ଅନାଇ ଅଛନ୍ତି ସାମାନ୍ୟ ନ ମଣ ରେ ॥ ତୋ
ମଙ୍ଗଳ ଯଶ କି ନନ୍ଦିବସ ଘୋଷୁଥାନ୍ତି ବସି ରେ । ମାନ ନ ନ
ମାନ କହୁଅଛି ଯାହା ବଇଷ୍ଣବ ଭକ୍ତି ରେ । ୪ ।

---

ନାରଦ ଓ କଂସର ପ୍ରତ୍ୟୁକ୍ତି ବଚନିକା ।

କଂସ—କହ ଋଷି ମୋର କିସ କରିବ ସେ ହରି ।
ନାରଦ—ଶୁଣରେ ନୃଶଂସ ସେହୁ ରାକ୍ଷସ ବଳୀ । ୧ ।
କଂସ—ମୋର ଭୟେ ବନ୍ଦୀଶାଳୁ ଗଲା ଯେ ପଳାଇ ।
ନାରଦ—ଜନ୍ମଦିନେ ପୂତନାର ପ୍ରାଣ ଅଛି ଖାଇ । ୨ ।
କଂସ—ମୋ ହର ସେବକ ଦେବରାଜ ପୁରନ୍ଦର ।
ନାରଦ—ତା ପୂଜା ଭାଙ୍ଗିଲା କୋପେ ଧଇଲା ମନ୍ଦର । ୩ ।
କଂସ—ଗରୁଡ଼ ଉଚ୍ଛିଷ୍ଟ ଖାଇ ଏତେ ତାର ବଳ ।
ନାରଦ—ଗୋପାଳ କୁହନ୍ତି ସେହୁ ଦେବତା ସକଳ । ୪ ।
କଂସ—ଗୋପେ ପଠାଇ ମାରିବ ଛନ୍ତି ଯେତେ ବୀର ।
ନାରଦ—ଆରେ ଦୁଷ୍ଟ; ଅଷ୍ଟମଲ୍ଲ ମାଇଲେଣି ତୋର । ୫ ।
କଂସ—ନିଜେ ନନ୍ଦଆଣିଲା ପଶି ବନାଶିବ ମୁହିଁ ।
ନାରଦ—ଗୋମନ୍ତ ଋଷିର ଶାପେ ନ ପାରିବୁ ଯାଇ । ୬ ।
କଂସ—କହ ନାରଦ ମୋ ଶତ୍ରୁ ମରିବ କେମନ୍ତେ ।
ନାରଦ—ଆମ୍ଭର ବଚନେ ରଙ୍ଗସଭା କର ଏଥେଁ । ୭ ।
ନାରଦ—ନିମନ୍ତ୍ରଣ କରି ବେନିଭାଇଙ୍କି ତୁ ଆଣ ।
କଂସ—କହିଲ ବଚନ କଉଣଲେ ଘେନିବ ପରାଣ । ୮ ।

[ନାରଦର ପ୍ରସ୍ଥାନ]

[ କଂସକୁ ମନ୍ତ୍ରୀ ପ୍ରବୋଧ କରିବା ]

ତେଜ ତେଜ ଚିନ୍ତା ଚିତ୍ତୁ ଭୋଜବଂଶ ବୀର । ନନ୍ଦଗଉଡ଼ ଟୋକାକୁ କିପାଁ ଏତେ ଡ଼ର । ପଦ । ମୁଷ୍ଟିକ କହଇ ବାଣୀ, ଆଜ୍ଞା ଦିଅ ନୃପମଣି । ମୁଷ୍ଟ୍ୟାଘାତେ ତୋର ଶତ୍ରୁ କରିଦେବି ଚୂର ।୧। ଚାଣୁର କହଇ ତହୁଁ, ନିଜ ଚରଣ ଦେଖାଇ । ପାଦଘାତେ ପଦା ହେବ ଯଶୋଦାକୁମର । ୨ । ଶୁଣିଣ ଦୁର୍ମିଲସୁତ, ପ୍ରଶଂସା କଲା ବହୁତ । ବୋଲେ ଉପାୟେ ନାଶିବା ନ ଯିବା ପାଶର ।୩। ଅକ୍ରୂରକୁ ଡ଼ାକିଆଣ, ଗୋପେ ସେ ଯାଉ ବହନ । ଆଣୁ ନନ୍ଦର ନନ୍ଦନ ବଇଷ୍ଟବ ଗିର । ୪ ।



ଅକ୍ରୂର ପ୍ରବେଶ ।

କିପାଁ ଡ଼କାଇଲ ନରନାଥ । କିସ ଆଜ୍ଞା ପାଳିବ ଏ ଭୃତ୍ୟ ।ପଦ। ଖାଇ ତୁମ୍ଭ ଅନ୍ନ, ଏ ମଧୁଭୁବନ, ଧରିଛି ଜୀବନ, ହେ ଭୋଜରାଜନ । କହନ୍ତୁ ବହନ କିସ ହୋଇବ ସାଧିତ । ୧ । କିସ ଆଜ୍ଞା ହେଉ, ମୋର ଭୀତ ଯାଉ; ଏ ଜୀବନ ଆଉ, ରହୁ ବା ନ ରହୁ, ଡ଼ାକ ଶୁଣି ହୃଦ ମୋର ହେଉଅଛି ଭୀତ । ୨ ।



( କଂସର ଆଦେଶ । )

କହେ କଂସାସୁର, ଶୁଣ ରେ ଅକ୍ରୂର, ଯାଅ ଗୋପପୁର, ବିଳମ୍ବ ନ କର, ନନ୍ଦକୁ କହିବୁ ଯାଇଁ ସକଳ ବୃତ୍ତାନ୍ତ । ନେଇଯା ତୁ ଲେଖା, ଗୋପାଳକୁ ଦେଖା; କରିବୁ ଚମକା, କହିବୁ ତୁ ଏକା, ରାମକୃଷ୍ଣ ନେଇଆସି ଭେଟିବୁ ତୁରିତ । ୪ । କହିବୁ ମଣ୍ଡଳ, ଧନୁଯାତ୍ରା କଲୁ; ଦେଖି ଯିବେ ପରା; ତୋର ଦୁଇ ପିଲା, ବଇଷ୍ଟବ ବୋଲେ କିପାଁ ରାଜା ହେଉଛ ଚକିତ । ୫ ।



[ ଅକ୍ରୂର ପ୍ରତି କଂସର ଉକ୍ତି । ]

ଲଢ଼ାଇବା ମାନସରେ ମୂଢ଼ କଂସରାଟ । ଦୂତଟରେ ଭେଢ଼ ମନ୍ତ୍ରୀ ମୁଟଣ୍ଡ ବାନ୍ଧେ ପାଟ । ବୁଢ଼ାନନ୍ଦ ମନ୍ଦରେ ବଢ଼ିଛି ହୁଡ଼ାରଖା । ଅଢ଼ାଇ ଆଙ୍ଗରେ ମନ୍ତ୍ରୀ ଛଡ଼ାଇବ ପଖା । ଭେଡ଼ାପରି ମୋଡ଼ାଇ ଉଡ଼ାଇ ଦେବ ମୁଣ୍ଡ । ଚୂଡ଼ାମନ୍ଥା ପରି ମନ୍ଥିଦେବ ତାର ପିଣ୍ଡ । ଗଉଡ଼ ବାଉଡ଼ ସେ ସାଉଡ଼ ହେବେ ଆଜ । ଘାଉଡ଼ଟୋଡ଼ା ମନ୍ତ୍ରର ଶିଖିଅଛୁ ପାଜ ॥ ମାଡ଼ ମାରୁଛନ୍ତି ଗଉଡ଼ ଶୀ ମୋଢ଼ କାନ । ଗାଡ଼ିଆ ପକାଇ ମାରିବ ଗୁଡ଼ିବ ଜୀବନ ॥ ମଡ଼ାଇବ ହସ୍ତୀପାଦେ ଛଡ଼ାଇବ ଚିନ୍ତା । ପଡ଼ାବୁଲି ବଇଷ୍ଣବ ରଚେ ଏ କବିତା ।୬।



[ ନନ୍ଦଠାକୁ ଅକ୍ରୂର ହସ୍ତେ ପତ୍ର ପଠାଇବା । ]

ଶ୍ରୀ ଶ୍ରୀ ସାରଧିସାରବର ପ୍ରତାପୀ କଂସାସୁର; ମଥୁରାପୁର ଈଶ୍ବର, ଏହି ଆଜ୍ଞା ମୋହର, ରେ ନନ୍ଦ ନୃପବର, ଗଲା ଯେ ଅକ୍ରୂର, ତୋର ଗୋପପୁର, ଘେନି ଭେଟିଘର, ରାମ କୃଷ୍ଣ ସଙ୍ଗର, ବସାଇ ରଥର, ଭେଟିବୁ ମୋଠାର, କାଲି ଚତୁର୍ଦ୍ଦଶୀର, ଧନୁଯଜ୍ଞ ହେବ ମୋର; ଏ ଆଜ୍ଞା ମେଣ୍ଟିଲେ ନ ରହିବ ଗୋପପୁର । ଇତି ।

ଶ୍ରୀ ଶ୍ରୀ ସାରଧିସାରବର ଶ୍ରେଷ୍ଠ



ମଥୁରାସମ୍ରାଟ ମହାରାଜ ।

( ଅକ୍ରୂରର ଗୋପକୁ ଯିବାର ଓ ସ୍ତବ )

ଗୋକୁଳାନନ୍ଦଚନ୍ଦ୍ରଙ୍କୁ, ସତେ ଦେଖିବି ଗୋକୁଳେ । ଶତପତ୍ର ନେତ୍ରେ ହରି, ଅନାଇବେ କେତେବେଳେ । ପଦ । କେଉଁ ମନ୍ତ୍ର କେଉଁ ଜପ, କେଉଁ ଜନ୍ମେ କଲି ତପ । ତୋଷିଛି କି କାଶୀବାସୀ ଝୋସିଛି କି ଗଙ୍ଗାଜଳେ ॥ ରାଜୀବ ପଦ୍ମର ଧୂଳି, ଧରି ଧରାପରେ ଶୋଇ । ମୁଖେ କହୁ ତ୍ରାହି' ଲୋଟୁଥିବି ପାଦତଳେ ।୧। ଉଠାଇବେ ଚକ୍ରଧର; ଛୁଆଁଇ ମୋହର କର । ଚୁମ୍ବାଇବେ ନେତ୍ର-

ନୀର ଶ୍ରୀବାସ ବାସ ଅଥିଲେ ॥ ଘଟାଇଅଛୁ ଦଇବ, କଂସମୋତେ ପଠାଇବ । ନନ୍ଦସୁତେ ଭେଟାଇବ ବଇଷ୍ଣବ ଚିତ୍ତେ ଭାଳେ ।୪।

### ସଖାସହ ରାମକୃଷ୍ଣ ଗୋଗୋଷ୍ଠକୁ ଗମନ ।

ଆସ ରେ କହ୍ନାଇ କରିଯିବା ଗୋଦୋହନ । କ୍ରମେ କ୍ରମେ ଆସି ଅସ୍ତ ହେଉଅଛୁ ଦିନ । ପଦ । ନିକାଛନ୍ଦ ଘେନି କରେ;ଆସ ଶୀଘ୍ର ବାହାର ରେ । ରବିଦେଲେଣି ବାହୁଡ଼ି ହୋଇଣ ଉଛନ୍ନ ॥ ସଖା ଡ଼ାକ ଶୁଣି କୃଷ୍ଣ, ପିନ୍ଧି ପୀତାମ୍ବରପାଟ । ନୀଳପାଟ ପିନ୍ଧି ବାହାରିଲେ ଶଙ୍କର୍ଷଣ ।୨। କରେ ଧରି ଦୁଗ୍ଧଭାଣ୍ଡ, ଦାଣ୍ଡରେ ହୋଇଲେ ଠୁଣ୍ଡ । କର ଧରାଧରି ହୋଇ କରନ୍ତି ଗମନ ।୩। ଗୋଗୋଷ୍ଠେ ପ୍ରବେଶ ହରି, ବତ୍ସାପାଦ ଛନ୍ଦିକରି । ଦୋହନ କରନ୍ତି ଗାବ ବୈଷ୍ଣବ ରଚନ ।୪।



### [ରାମକୃଷ୍ଣ ସଖାସହିତରେ ଗୋଦୋହନ ଓ ଅକ୍ରୂର ପ୍ରବେଶ ।]

ଗାଈ ଦୁହୁଁଛନ୍ତି ସଖା ସଙ୍ଗେ ଅନନ୍ତ । ଏକାଳେ ମିଳିଲି ଯାଇଁ କଂସରାଜା ଦୂତ । ମନେ କରଇ ବିଚାର । ଗୋଗୋଷ୍ଠରେ ଥିବେ ନିଶ୍ଚେ ରାମ ଦାମୋଦର ।୧। ଗୋଗୋଷ୍ଠ ନିକଟରେ ସେ ହୋଇଲା ପ୍ରବେଶ । ଅକ୍ରୂରର ମନ ବୁଝିବାକୁ ପୀତବାସ । ମାୟା-ଧରି ମାୟା କଲେ । ସକଳ ଲୋକରେ କୃଷ୍ଣ ସ୍ୱରୂପ ହୋଇଲେ ॥ ତାହା ଦେଖି ଥକା ହୋଇ ଦଣ୍ଡାଇଲେ ବୀର । ମନେ ବିଚାରଇ ସର୍ବେ ଏକଇ ପ୍ରକାର । ନେତ୍ର ଦେଖିଲେ ତ ନାହିଁ । ସକଳେ ଦିଶନ୍ତି କୃଷ୍ଣଚନ୍ଦ୍ର ପରି ଦେହୀ ।୩। ପୁଣି ମନେ ଭାବେ ମୋ ଆସିବା ଜାଣି ହରି । ମାୟା କରିଛନ୍ତି ମନ ବୁଝିବେ ମୋହରି । ମନେ୨ କଲା ସ୍ତବ । ଭବବ୍ରହ୍ମା ହୋଇ କିପାଁ କରୁଛ ଏ ଭାବ ॥ ଭୃତ୍ୟଠାରେ ପ୍ରଭୁ କିପାଁ କରୁଛ ଛଳନା । ତନ୍ତ୍ରମନ୍ତ୍ରରେ ଉଡ଼ାଇଛ କୃପାମୟ ବାନା । ଅନ୍ତର୍ଯାମୀ ସବୁଜାଣି । ଶତ୍ରୁ ମୁଁ ନୁହଇ କେଭେ ବଙ୍କା-

ବଂଶୀପାଣି ॥ ଭକତ ହୃଦଟବଦନା ଜାଣି ହୃଷୀକେଶ । ଗାଈ ଦୁହୁଁ ଦୁହୁଁ ଫିଟିଗଲା ନିଜ କେଶ । ଗିରିଭୁଜ ହେଲେ ତହିଁ । ବେନି-ଭୁଜେ ମୋହନ ଦୋହନ କଲେ ଗାଈ । ୬ । ବେନିକରେ କେଶବ ବନ୍ଧନ କଲେ କେଶ । ଅକ୍ରୂର ଜାଣିଲା ଏହି ନିଶ୍ଚେ ପୀତବାସ । ରଥୁଁ ଓହ୍ଲାଇଲା ବୀର । ବଇଷ୍ଣବ ତ୍ରାହି କହି ପଡ଼ିଲା ପୟର । ୭ ।



ଦୁଧଭାଣ୍ଡ ଥୋଇ ବ୍ରହ୍ମାଣ୍ଡଗୋସାଇଁ ଉଠି ଠିଆହେଲେ ବହନ ହେ । ରାମକୁ ଡାକନ୍ତି ଆସ ମୋର କତ ଦେଖ ପ୍ରିୟ ବନ୍ଧୁ ବଦନ ହେ । ପଦ । ଅକ୍ରୂରର ହାତ ଧରି ଗୋପୀନାଥ ଉଠାଇ କହନ୍ତି ବଚନ ହେ । କେଉଁକାର୍ଯ୍ୟେ ବୀର ଛାଡ଼ି ମଥୁରାର ଏଥକୁ କରଛ ଗମନ ହେ । ୧ ।



( ରାମ କୃଷ୍ଣଙ୍କର ମଥୁରାର କୁଶଳ ପ୍ରଶ୍ନ । )

କହ ରେ ଅକ୍ରୂର ମୋତେ ମଥୁରା ଖବର ରେ । କୁଶଳରେ ଅଛନ୍ତି କି ମୋ ମାମୁ କଂସାସୁର ରେ ।ପଦ। ମାଇଁମାନେ କି କରନ୍ତି, ମୋ କଥା କି ପଚାରନ୍ତି । ଅଜା ଉଗ୍ରସେନ କିସ କରୁଛନ୍ତି ମୋର ରେ । ୧ । ମୋହର ଦେବକୀ ମାତା, କହ ତାଙ୍କର ବାରତା । ମୋତେ ନ ଦେଖି କି ପିତା ହୁଅନ୍ତି ଅଧୀର ରେ । ୨ । ରାଜାର ଭଣଜା ହୋଇ, ବନେ ଚରାଇଲି ଗାଈ । ବାଳକ କାଳରୁ ନ ଦେଖିଲି ମାମୁଘର ରେ । ୩ । ବନେ ଭକ୍ଷି ଫଳ ମୂଳ, କଟାଉ-ଅଛି ମୁଁ କାଳ । ବଇଷ୍ଣବ ବୋଲେ ଏହା ଥିଲା ମୋ କପାଳରେ ॥

---

( ଅକ୍ରୂର ଶ୍ରୀକୃଷ୍ଣଙ୍କ ପ୍ରତି )

ବ୍ରହ୍ମାଣ୍ଡନାଥଙ୍କୁ କେଉଁ କଥା ନାହିଁ ଜଣା । ଭୃତ୍ୟଚରିତ୍ର ବଢ଼ାବାକୁ ହେଉଛ ଅଜଣା । ପଦ । କଂସର କପଟମାନ, ଜାଣ ହେ ବଂଶୀ-ବଦନ । ଆଗି ଥାଉଁ ଥାଉଁ ସେ ହୋଇଛି ଦାନକଣା । ୧ । ତୁମ୍ଭଙ୍କୁ ନେବାର ପାଇଁ, ରଥ ଦେଇଛି ପଠାଇ । ତୁମ୍ଭ ମାୟାଫାନ୍ଦେ ପଡ଼ି

ହେଉଅଛ ବଣା । ୨। କରଅଛ ରଙ୍ଗମଞ୍ଚି, ଦେଖିବାପାଇଁ ସୁସଞ୍ଚି । ପକାଇ ମାରବ ତଳେ କରଅଛ ଖଣା । ୩ । କୁବଳୟା କରୀବର, ରଖାଇଛ ରଙ୍ଗଦ୍ଵାର । ବଇଷ୍ଣବ ବୋଲେ ହରି ସଦା ମୁଁ ତୋ କଣା । ୪ ।



( ଅକ୍ରୂରଙ୍କୁ ରାମକୃଷ୍ଣଙ୍କର ସମ୍ମାନ )

ଅକ୍ରୂରଙ୍କୁ ଘେନି ହରି ମିଳିଲେ ମନ୍ଦିରେ । ମାନ୍ୟବିଧି କରି ବସାଇଲେ ପଲ୍ୟଙ୍କରେ ସେ । ଧୀରେ ଚରଣ ସ୍ଵପନ୍ତି । ମଥୁରା-ଯିବା କହିବୁ ପିତାଙ୍କୁ ବୈଠେ । ୧ । ନାହିଁ କଲେ କେବେ ନ ଡରିବୁ ତୁ ଅକ୍ରୂର । ବୋଲିବୁ ନ ଗଲେ ଯେ କୋପିବ କଂସାସୁର ସେ । ମୁହିଁ ଡଗର ଆସିଛି । ମଥୁରାକୁ ଘେନିଯିବ ରାମ ଶିରୀବର୍ଗ ॥ ଶୁଣିଣ ଅକ୍ରୂର ବେଗେ ଡାକିଲ ନନ୍ଦଙ୍କୁ । ବାରେ ମଥୁରାକୁ ନେବ ରାମ ଗୋବିନ୍ଦଙ୍କୁ ସେ । ମାତା ଜାଣିଲ ତକ୍ଷଣି । ଅକ୍ରୂର ପାଶେ ପ୍ରବେଶ ବଇଷ୍ଣବ ଭଣି ॥



[ ନନ୍ଦଙ୍କୁ ଅକ୍ରୂରର ପତ୍ର ପ୍ରଦାନ । ]

ମେଲଣି କର ରେ ନନ୍ଦ ଆନନ୍ଦରେ ରାମହରି । ମଥୁରାକୁ ଯିବେ ଲେଖା ପଠାଇଛି ଦଣ୍ଡଧାରୀ । ପଦ । ଲେଖା ଦେଇଛି ମୋ ହାତେ, ଆବର କହିଛି ଯେତେ । ନେବ ତୋର ସୁତ ରଥେ ବସାଇ ସଙ୍ଗେ ମୋହରି । ୧। ଗୋପେ ଯେତେକ ଗୋପାଳ, ଦହି ଦୁଧ କର ଠୁଳ । ଘେନିଣ ଚଳ ଚଳିଲ ଧନୁଯାତ୍ରା ଅଛି କରି ।୨। ରଙ୍ଗେ ରଙ୍ଗସଭା ତାର, ଦେଖିବେ ତୋ ରଙ୍ଗାଧର । ମଗାଇ କହୁଛି ଶୀଘ୍ର ଦଅରେ ବିଦାୟ କରି ।୩। ମାମୁ ଆଶା ଅଛି ହୋଇ, ଭଣଜା ଦେଖିବାପାଇଁ, ଦ୍ଵିଜ ବଇଷ୍ଣବ କହେ ନ ଗଲେ ନାଶିବ ଶିରୀ । ୪ ।



( ନନ୍ଦର ବିନୟ ଉକ୍ତି )

ସତେ ଘେନିଯିବୁ ମୋର ରେ, ଘନଶ୍ୟାମଙ୍କୁ ରଥେ ବସାଇ । ବନଫୁଲ ତୋଳି ବନମାଳ କାନ୍ଧେ ଗଳାରେ ଝୁଲିବାପାଇଁ ।ପଦ ।

ମୁଖେଦେଇ ବିଷ ମାରୁ ପଠେ କଂସ ଅଂଶ ବଂଶ ନାଶ ସାଇଁ ।
କଳାମାଣିକକୁ କଂସାର ହାତରେ କେମନ୍ତେ ଦେବ ଭସାଇ ।୧।
କାନ୍ଧେ ବସି ଆଉ ଗୃହ କେ ମାଗିବ କାନ୍ଦି କାନ୍ଦି କଥା କହି ।
ଗୋବିନ୍ଦ ଗୋବିନ୍ଦ ଡାକନ୍ତେ କେ ଦୂରୁ ଧାଇଁବ ଆନନ୍ଦ ହୋଇ ।
ବୃଦ୍ଧକାଳେ ମୋତେ ଦେଇଛି ବିଧାତା ଅନ୍ଧର ନୟନ ଦୁଇ ।
ଛଡ଼ାଇଲୁ ଚନ୍ଦ୍ରା ଚତ୍ରୁ ବଢ଼ାଇଛି ଦହି ଦୁଧ ସର ଖୋଇ । ୩ ।
ପିନ୍ଧାଇଦେ ବାସ ବୋଲି ମୋର ପାଶ କେ ଗୋଳକରିବ ଯାଇଁ ।
ବଇଷ୍ଣବ ଗିର ନ ଜାଣ ଅକ୍ରୂର ଘମହରି ବେଜାଭାଇ । ୪ ।

—ଃଠଃ—

[ ଅକ୍ରୂରକୁ ଚେନି ଯଶୋଦାଙ୍କ ଶୋକ ]

କୃଷ୍ଣ ମଧୁପୁର ଯିବାର ଶୁଣି । କାନ୍ଦି କହୁଛନ୍ତି ଯଶୋଦାରାଣୀ । ଖୋଲିନାଅ ବେନିଚକ୍ଷୁ ଅକ୍ରୂର । ଖୁର ତଣ୍ଟିରେ ଦେଇଯାଅ ମୋର । ଗୋକୁଳ କୁଳ କଳାନିଧିକି । ତ୍ରାସକରୁ ବାହୁ ହୋଇ କାନ୍ଦିଲି । ୧ । ଘରକରଣା ମୋ କହିବାଇ ପାଇଁ । ଧେନୁ ବୃନ୍ଦାବନେ କେ ଯିବ ଗାଈ । ଅନାଥ ହୋଇଣ ମରିବେ ନନ୍ଦ । ଅନ୍ଧ ହୋଇଯିବେ ଗୋପିକାବୃନ୍ଦ । ଚୁମ୍ବିବେ କାହା ଚନ୍ଦ୍ରମୁଖକୁ । ଚୁମ୍ବଦେବେ ଭୁଲି ସ୍ୱର୍ଗସୁଖକୁ । ୨ । ଛଡ଼ାଇ ନେଉ ମୋ ଅଖିଳନିଧି । ଛଳେ ରାଜା ତୋତେ ପେଶିଛି ଯଦି । ଜହର ଗୋଳି ଦେଇଯାଅ ତୁନ୍ତେ । ଜଗତମୋହନକୁ ନେଇ ଯା ଦାନ୍ତେ । ଝାଡ଼ିବ କାହା ଶ୍ରୀଅଙ୍ଗୁ ଧୂଳି । ଟୁଲି ନାଚିବ କେ ବଜାନ୍ତେ ତାଳି ।୩। ନ ଜାଣ ଅକ୍ରୂର ଦୁଃଖିସଙ୍ଖୋଳି । ନୀଳମଣି ମୋର ଗଳାର ମାଳି । ଠଙ୍କା ସୁନା ଧନ ବସନ ମାନ । ଝାଣପଡା ବହି ନେଉ ରାଜନ । ଠଣ୍ଟିହୃଦର କାଖରେ ନେଇ । ବଇ ବୋଲେ ଭିକ ମାଗିବ ଯାଇ । ୪ ।

—ଃଠଃ—

( ଯଶୋଦାଙ୍କ କୃଷ୍ଣ ପ୍ରତି ଶୋକ । )

ଦୁଃଖିଧନ ନୀଳମଣିରେ, ମାଆ ବୋଲ୍ କିଏ ଡାକିବ ମୋତେ । ଗୋରୁ ଘେନି ଫେରି ଆସିବା ବେଳକୁ କାହାପାଇଁ ଜଗି ବସିବି ପଥେ । ପଦ । ଯେବେ ବଳା ଆସିବ କୋଳ, କାହ୍ନୁ କିଏ କରିବ ଅଳ । ଗଳ ହେଉଥିଲେ ଧୂଳି ବୋଳିହୋଇ ଦୋଳି ଖେଳିବ କେ କାହ୍ନପଣନ୍ତେ ।୧। ଯେବେ ଦହି ମନ୍ଥା ହୋଇବ, କିଏ ଟେକି ଲବଣୀ ଖାଇବ । ହୋଇଣ ଆନନ୍ଦ ଗାଈ ଦୁହିଁବାକୁ ଶିକାଛନ୍ଦି ଘେନି କେ ନିବ ହାତେ । ୨ । ଖେଳି ଯାଉଥିଲେ ଦାଣ୍ଡରେ, ଧୂଳି ପଡ଼ୁଥାଇ ମୁଣ୍ଡରେ । କଳି କଲେ କେହି ମାଆ ମାଆ କହି କଇଁ କଇଁ ହୋଇ କାନ୍ଦିବୁ କେତେ । ୩ । ଯେବେ ଯିବୁ ମଧୁପୁରକୁ, ଅନାଇବି କାହା ମୁଖକୁ । କହେ ବଇଷ୍ଣବ ଜଶୋଦା ଜୀବ ଯିବ ମୂର୍ଚ୍ଛିବ ଗଳାମାଳ କେମନ୍ତେ । ୪ ।

କୃଷ୍ଣ ଉକ୍ତି ।

ଆଗଲୋ ଗର୍ଭଧାରୀ କାହିଁକି, ମୋହପାଇଁ ଏତେ କରୁଛୁ ଚିନ୍ତା । ରହି ଦିନାକରେ ଫେରି ମୁଁ ଆସିବି କୁଶଳ ମନେ କଲ୍ୟାଣ କରୁଥା । ପଦ । ଡାକିଛନ୍ତି ମଉଳା କଂସ, ନ ଗଲେ ରାଗିବେ ଅବଶ୍ୟ । ବରଗିଛୁ ଦୂତ ପଠାଇଛି ରଥ ଦେଖିଯିବି ପରା ତା ଧନୁଯାତ୍ରା । ସଙ୍ଗେ ନିବେ ଗୋପାଳବାଳ; ଯଜ୍ଞ ଦେଖିବାକୁ ସକଳ । ଦହି ଦୁଧ ସର ନେବେ ଭାର' ଲେଖି ପଠାଇଛି କରି ଜମନ୍ତା ।୨। ଶୋଭା ମଧୁପୁରର ଦେଖି; ନେତ୍ର ବେନି ହୋଇବ ସୁଖୀ । ନିବେ ବଡ଼ଭାଇ ସଙ୍ଗତରେ ନେଇ ରଚେ ବଇଷ୍ଣବ ଏହି କବିତା ।୩।

( ଗୋପୀମାନଙ୍କର ପ୍ରବେଶ ଅକ୍ରୂର ପ୍ରତି ବିନୟ ଉକ୍ତି । )

ନ ନିଅ ଆମ୍ଭ ଶ୍ରୀହରି ହେ ଅକ୍ରୂର, ଗୋପପୁର ଅନ୍ଧାର କରି । ଇନ୍ଦ୍ର କଲେ କୋପ; କେ ରଖିବ ଗୋପ, ବାମରେ

ମନ୍ଦର ଧରି ହେ । ପଦ । କେ ଜଳକେଳି କରିବ ହେ ଅକ୍ରୂର କେ ପଥ ଜଗି ଘେରିବ । ବଇଁଶୀ ବଜାଇଁ, ଗୋପୀମନ ମୋହି; ବାସ କେ କରିବ ଚୋରି ହେ । ୧ । କେ କଳାଭୂତ ହୋଇବ ହେ ଅକ୍ରୂର କିଏ ଲବଣୀ ଖାଇବ । ନାହିଁ କଲେ କିଏ ହୋଇଣ ବିନୟ; ମାଗିବ ଅଧିଁଲ ଧରି ହେ । ୨ । ସଙ୍ଗେ ଘେନି ସଖାମାନ ହେ ଅକ୍ରୂର କେ ଚଳିବ ବୃନ୍ଦାବନ । ଗଉଡ଼ୁଆ ଗୀତ; ବଂଶୀରେ ବଜାଇ; ଚରାଇବ କେ ବାଛୁରି ହେ ॥ କିଏସେ ନାବିକ ହୋଇ ହେ ଅକ୍ରୂର ବିକି ଯିବାବେଳେ ଦଧି । ବଇଷ୍ଣବ କହି; ଘାଟ ମାଗିନେଇ; ତେବେ ସେ କରିବ ପାରି ରେ । ୪ ।



[ ଗୋପିମାନଙ୍କର କୃଷ୍ଣ ପ୍ରତି ଉକ୍ତି । ]

ଯେବେ ଏତେ କଥା ଚଉରି, ଥିଲି ଚିନ୍ତାମଣି ରେ । କିପାଇଁ ମହତ ନେଲୁ ଏତେ ଗୋପାଙ୍ଗଣୀ । କାହ୍ନୁ । ଏତେ ଗୋପାଙ୍ଗଣୀ ରେ । ପଦ । ବଜାଇ ବଇଁଶୀସ୍ୱନ; ମୋହିଲୁ ଆମ୍ଭର ମନ । କ୍ଷଣିକେ ନ ଦେଖି ସର୍ବେ ହୋଇବୁଁ ଅଧୁଣୀ ରେ ॥ ୧ ॥ ପିଢାପରେ ପିଢା ଥୋଇ; ଶିକାକୁ ହାତ ବଢାଇ । ଅଢାଇ ହାଣ୍ଡିକୁ କିପାଁ ଖାଉଥିଲୁ ଲବଣୀ ରେ । ୨ । ଛାଡ଼ି ପତି ପୁତ୍ର ଆଶା; ତୋତେ କରିଲୁଁ ଭରସା । ଏବେ କରୁଛୁ ନିରାଶା କିପାଁ ନୀଳମଣି ରେ ॥ ୩ ॥ ଦେଖିଲେ ତୋ ଚନ୍ଦ୍ରମୁଖ; ପାଶୋରୁ ସକଳ ଦୁଃଖ । ବଇଷ୍ଣବ ବୋଲେ ଏହା କିଏ ଥିଲି ଜାଣି ରେ । ୪ ।



( କୃଷ୍ଣ ଗୋପୀମାନଙ୍କୁ ପ୍ରବୋଧ କରିବାର । )

ଥାଅ ଗୋ ହଂସଗମନା ଯିବି କଂସପୁର । ଚିନ୍ତା ନ କର ଚଉରି ଆଗୋ ରମାବର । ପଦ । ତୁମ୍ଭ ଆମ୍ଭ ଯେତେ ଭାବ; ଜାବଗଲେ ମନୁ ଯିବ । ଜୀବବଲ୍ଲଭୀ ଲଭିଛି ସେବାକରି ହର ॥ ଯୋଗିଯୋଗ ବିନାଶିନୀ, ଯୁଗ ହୋଇବ ଯାମିନୀ । ଘଡ଼ି ଘଡ଼ି ତୁମ୍ଭ

ପ୍ରୀତି ପଡ଼ିବ ମନରେ ॥ ପରବତ ସୁନା ମୋତେ; ପର ନକରିବ ଶତ୍ରେ । ମୀନ କି ବଞ୍ଚିଛି କାହିଁ ଛାଡ଼ି ସରୋବର । ୩ । ନୀରଜ ନେତ୍ରରୁ ନୀର; ନ ତେଜ ନାଗରବର । ଗୃହବନେ ଫେରିବ ମୁଁ ବଇଷ୍ଣବ ଗିର ॥

## ପୁନରୁକ୍ତି ।

ଯାଶୋରିଲ ପୂର୍ବ ଭାବ ହେ ମାଧବ ପଛରେ ମନେ କରୁଥିବ । ରଥରେ ବସିଛ ପରେ ପରାଣେ ଉତ୍ତର କି ନ କହିବ ହେ । ପଦ । ରାସକ୍ରୀଡ଼ା ବାସରେ ହେ ମାଧବ ତାହା କି ଦେଲ ପାଶୋର । ଗିରି ଉର୍‌ଜାଙ୍କ ସରଳ ହୃଦରୁ ଦରଦ ଯାଇ ନ ଥିବ ହେ । ୧ । ଗୋପୀଙ୍କ ପାଦ ଅଳତା ହେ ମାଧବ ଘେନିଥିଲ ପରି ଶତା । ପିତା କି ହୋଇଲ ଏବେ ପୀତପଟ ଛତ୍ରରେ ଥରେ ତା ଭାବ ହେ । ୨ । କେତେ କାଖେ ଘେନିକରି ହେ ମାଧବ ବୁଲିଛ ଗୋପନଗରୀ । କେତେ ଦୁଧସର ପୂରାଇଣି କର ସରେଇ କେ ଖୁଆଇବ ହେ । ୩ । କଳା ଶ୍ରୀମୁଖମଣ୍ଡଳ ହେ ମାଧବ ଯେବେ ଝାଉଁଳ ବହୁଥିବ । ପୋଛି ଦେଉ ଆଉଁ କାନିପଣନ୍ତରେ ଗୀତେ କହେ ବଇଷ୍ଣବ ହେ । ୪ ।



## [ ଅକ୍ରୂର ରଥ ବାହିବା । ]

କୃଷ୍ଣ ଆଜ୍ଞାରେ ରଥ ଚଳାଏ ବୀର । ଗୋପୀ ଡାକନ୍ତି ପଥେ ରହ ଅକ୍ରୂର ରେ । ନ ନିଅ ହରି । ଅନ୍ଧାର କରି ଏହି ଗୋପ ନଗରୀରେ ॥ ୧ ॥ ନେତ୍ରପିତୁଳା ନେଇ ଯାଉ ଆମ୍ଭର । ଦୟାଧର୍ମ କି ଥିଲେ ନାହିଁ ତୋହର ରେ । ତେଜିବୁ ଜୀବ । ଏ ସ୍ତ୍ରୀବଧ ହତ୍ୟା ଦୋଷ ତୋତେ ଲାଗିବ ରେ । ୨ । କଂସଭୂଗର ବୋଲ ଏଡେ ତୋ ଆଣ୍ଟ । ସକଳେ ଘେରି ତୋତେ କରିବୁଁ ନଷ୍ଟ ରେ । ଇଷ୍ଟ ମୂଳର । ରାମକୃଷ୍ଣଙ୍କୁ ଘେନି ଯାଉ ଆମ୍ଭର ରେ ॥୩॥ ହେ ବନମାଳି ଆହେ ବ୍ରଜପାଳିଆ । ଗୋପ କାମିନୀ-

ଶ୍ରେର ଗୁଞ୍ଜମାଳିଆ ହେ । ବଂଶୀବଦନ । ଦାସୀ ଗୁହାରି ଶୁଭ୍ର-ନାହାଁ କ କର୍ଣ୍ଣ ହେ ॥ ଅନ୍ତୁଡ଼ି ଶାନ୍ତୁ ଆମ୍ଭେ ଜାଣୁ ନାହୁଁକ । ନାଶ ନାଶିବ ଆସିଥିଲୁ ମନ୍ଦ୍ରାକ ହେ । ପୂତନା ମର୍ । କେ ଜାଣିଥିଲ ଏହା ହୋଇବ ପର୍ ହେ ॥ ଅକ୍ରୂର ରଥ ନେଉଥାଏ ଚଳାଇ । ଗୋପୀଗଣ ପଛରୁ ଧଇଲେ ଯାଇଁ ସେ । ବଇ ରଚନ । ସିନ୍ଧୁ ଲହରୀ ପ୍ରାପ୍ତ ଶୁଭେ ବେଦନ ସେ ॥



( ଅକ୍ରୂର ପ୍ରତି ଗୋପୀମାନଙ୍କର ବିନୟ ଉକ୍ତି । )

ରଥ ରଖ ପଥେ ଦେଖୁଁ ବଙ୍କାବଂଶୀପାଣିକ । ନେଇ ନ ପଳା ଅକ୍ରୂର ଇନ୍ଦ୍ରନୀଳମଣିକ । ପଦ । ଗୁଞ୍ଜବେଢ଼ା ପୀତଧଡ଼ା; ତ୍ରିଭଙ୍ଗ ମୂର୍ତ୍ତିରେ ଛଡ଼ା । ହେବା ଶୋଭା ଶ୍ୟେରକର ନେଉଅଛୁ ପୁଣିକ ॥ ରାଧାପୁରେ ଶ୍ୟେର ହୋଇ, ଆଉ କେ ପଶିବ ଯାଇଁ । ମାଇଁ ମାଇଁ ଡାକ ଆଉ କେ ଡାକିବ ଜାଣିକ ॥ ନନ୍ଦ କନ୍ଧେ କେ ବସିବ, ଗୃନ୍ଦଗୋଷ୍ଠି କେ ମାଗିବ । ମୂଳୁଛ ବର୍ଥିବୁଁ କ ସେ ତେରଛ ଗ୍ରହାଣିକ ॥ କୃଷ୍ଣ ଆମ୍ଭ ଅଷ୍ଟନିଧି; କୃଷ୍ଣ ବ୍ୟାଧି ମହୌଷଧି । କୃଷ୍ଣ ଜୀବନ ସଙ୍ଗାଲି ବଇଷ୍ଣବ ଭଣିକ । ୪ ।



[ କଂସର ଡ଼ହା । ]

ସେ ପ୍ରଚଣ୍ଡ କଂସ ଅଣ୍ଡାଳଣ ନିଶ ଡାକେ ରେ ଡଗର ଗଲୁ କେଣେ । ଫାଟିଯାଏ ହଣ୍ଡା ଆଣିଲ କି ହୁଣ୍ଡା ଗଉଡ଼ ଅଣ୍ଡାକୁ ମନ୍ତ୍ରୀ ଏଣେ । ଲଣ୍ଡାକଲ ମୋର ଗଣ୍ଡା ଗଣ୍ଡା ଖାଇ ଷଣ୍ଢାମର କୃଷ୍ଣ ମେଣ୍ଢାରଖା । ଧଣ୍ଡା ମାଳ ବୁହା ଛଣ୍ଡାଇ ଦେଲ କି ଅକ୍ରୂରର ମୁଣ୍ଡ ମାର ଠେକା ।୨। ଭଣ୍ଡାଇଲ କବା ମଣ୍ଡା ଖୋଇଦେଇ ଥଣ୍ଡା କରି ଦେଲ ତାର ଚଉ । ପିଣ୍ଡାରେ ବସାଇ ମୁଣ୍ଡାକୁ ନୁଆଁଇ ନନ୍ଦବୁଢ଼ା କରି ଦଣ୍ଡବତ ।୩। ମୁଣ୍ଡାଇଲ ଗିରି କୁଣ୍ଡାପଠ ପରି ଖଣ୍ଡି ଦେଲ ଇନ୍ଦ୍ର ଗର୍ବ ହେଲା । ଭୁଣ୍ଡାଇଲ ଫୁଲ ମହା ଦୁରୁ ଦଣ୍ଡ ପଶିଣ

କାଳନ୍ଦୀ ଗଣ୍ଡଜଳେ ॥ ଏରଣ୍ଡଦଣ୍ଡ ପରାୟେ ଦଣ୍ଡକରେ ଯାମଳା-ଅର୍ଜ୍ଜୁନ ଓପାଡ଼ିଲ । ଦାଣ୍ଡ ଜଗି ଗୋଇ ଦହିଭାଣ୍ଡ ଭାଙ୍ଗି ଖଣ୍ଡ ଖଣ୍ଡ କରି ଫୋପାଡ଼ିଲ ॥ ସେ ଦଣ୍ଡା ବାଡ଼ୁଙ୍ଗା ପଣ୍ଡା ହୋଇ ଦନେ ଚଣ୍ଡାଂଶୁ ପୂଜିଲ ଯମୁନାରେ । ଭଣ୍ଡ ବଇଷ୍ଣବ ଦାଣ୍ଡେ କି ଦେଖିବ ଯିବାବେଳେ ଦଣ୍ଡଧରପୁରେ । ୬ ।



[ ଅକ୍ରୂର ପ୍ରତ ଗୋପୀମାନଙ୍କର ଭର୍ତ୍ସନା । ]

ଅକ୍ରୂରରେ, ଅଟୁ ଏଡ଼କ ଡ଼କାଇତ । ଆମ୍ଭଙ୍କୁ ବନାଶିନେଉ ପ୍ରାନକୃଷ୍ଣ ବଉ ।ପଦା ରାଜାର ଡ଼ଗର ହୋଇ, ଏଡ଼େ ଅବଶ୍ୱାସୀ ତୁହି । ତୁ କାହୁଁ ଜାଣିବୁ ମାନ ମର୍ଯ୍ୟାଦା ମହତ୍ୱ ॥ ପାଇଲେ ରାଜା ହୁକୁମ, ନ ମାନନ୍ତି କୁଳ ଧର୍ମ । ଛୋଟଲୋକଙ୍କର ରୀତ ଅଟଇ ଏମନ୍ତ ।୨। କଂସ ମନ୍ତ୍ରୀ ପଢାଇ,ନେଉଅଛୁବେନିଭାଇ । ଚଡ଼କ ଶିରରେ ପଡ଼ୁ ପୋଡ଼ ହୁଅ ହତ ।୩। ପଢ଼ୁଛୁ ଆମ୍ଭ କରମ, ଛାଡ଼ୁଛୁ ତୋତେ ଧରମ । ମରମ ଦହୁଛୁ ବଇଷ୍ଣବ ବୋଲେ ଗୀତ ।୪।



[ ରଥସ୍ଖଳନ । ]

କୃଷ୍ଣ ଆଜ୍ଞା ପାଇ ବୀର, ରଥ ବାହେ ଧାଡକାର, ଗୋପୀଏ ଡ଼ାକନ୍ତି ରଥ ରଖ । ଅକ୍ରୂରରେ । ଥରେ ନୟନ ପୂରାଇ, ଦେଖିଥାଉଁ ବେନିଭାଇ, ଧଳା କଳା ରାଜୀବ ଶ୍ରୀମୁଖ । ୧ । ସର୍ବେ ଊର୍ଦ୍ଧ୍ୱମୁଖ ହୋଇ, ରଥକୁ ଛନ୍ତି ଅନାଇ, ରଥଧ୍ୱଜା ହୋଇଲ ଅଦୃଶ୍ୟ । ସେହି କାଳେ । ନୀରଜ ନେତ୍ରରୁ ନୀର;ବହିପଡେ ଝରଝର, ବାହୁଡ଼ିଲେ ହୋଇଣ ନିରାଶ ।୨। ଯମୁନା କୂଳରେ ଯାଇଁ; ପ୍ରବେଶ ହୋଇଲେ ତହିଁ,ରଥ ରଖି କହଇ ଅକ୍ରୂର । ଚକ୍ରଧର । ଆଜ୍ଞା ଦେଲେ ଭଗବାନ, କରିବ ମୁଁ ଜଳେ ସ୍ନାନ, କୂଳେ ଥାଅ ବେନି ସହୋଦର ॥ ଏତେ କହି ମନ୍ତ୍ରୀମଣି, କୂଳରେ ପଶି

ତକ୍ଷଣି, ନେତ୍ର ବୁଜ ବୁଡ଼ଣ ଦେଖଇ । ମନ୍ତ୍ରୀ ତହୁଁ । ମାୟାଧର ମାୟା କଲେ, ଅକ୍ରୂର ମନ ବଢ଼ାଇଲେ, ଜଳରେ ଦେଖାଇ ଭାବ-ଗ୍ରାହୀ । ୪ । ମନ୍ତ୍ରୀ ଶରେ ବସ୍ତ୍ରଇଲା, ନେତ୍ରେ ହରି ପଳାଇଲା, କଂସଭ୍ରତରେ ମୁଣି ଗୋପପୁର । ସେ ଚକ୍ରଧର । ଉଠି ଅନାଏ କୂଳରେ ଦେଖିଲା କୃଷ୍ଣ ଡୋଳରେ, ପୁଣି ଜଳେ ବୁଡ଼ିଲା ସତ୍ୱର ॥ ପୁଣି ଦେଖେ ସେହିପରି, ଜଳମଧ୍ୟେ ଶ୍ରୀମନ୍ତ୍ରହରି, ଚିତ୍ତରେ ଭାବଇ ଏହି ଭାବ । ମନ୍ତ୍ରୀବର । ମାୟା କଲେ ପଦ୍ମପାଣି, ଉଠି ରଥେ ଗୃହେଁ ପୁଣି, ମନେ ମନେ ଆରମ୍ଭିଲା ସ୍ତବ ॥ ଜୟ ପତିତପାବନ ଶ୍ରୀମନ୍ତ ଜୀବ ଜୀବନ, ମତ୍ସ୍ୟ କଚ୍ଛ ବରାହ ଶ୍ରୀରାମ । ପର୍ଶୁରାମ । ନୃସିଂହ ବାମନ ରୂପି; ବଇଷ୍ଣବ ମହାପାପୀ, ଦଅ ବାରେ ଗତି ମୁକ୍ତିଧାମ । ୭ ।



[ ଗୋପୀମାନଙ୍କର ଗୀତ । ]

ଆସନ୍ତା କି ବସନ୍ତ ମିତ ଯେବେ ନନ୍ଦସୂତ, ମଥୁରାରୁ ଫେରି ଆସନ୍ତା । ଘୋଷା । ଫୁଟିଛି ନିଆଳି ମଲ୍ଲୀ, ନାନା ପୁଷ୍ପମାନ ତୋଳି, ବନମାଳ ପାଇଁ ଫୁଲ ଗୁନ୍ଥି ବାପାଉଁକି ଦନ୍ତା ॥ ପିକ କୁହୁ କୁହୁ କରେ, ଶ୍ୟାମ ବଂଶୀ ବାଜେ ଧୀରେ; ରସାଳସା ଶବ୍ଦ ଶୁଣି ପାଶେ ମନ ନ ରହନ୍ତା ॥ ବହଇମନ୍ଦ ପବନ ଦହୁଛି ଆମ୍ଭ ଜୀବନ । ବଂଶୀପାଣି ରସିଥିଲେ ଅବଶ୍ୟ ଭେଟ ହୁଅନ୍ତା । ବୀର ବୋଲେ କୃଷ୍ଣ ଥିଲେ କୁଞ୍ଜି କି ଅଶେଷାଭାସନ୍ତା ॥



ଜଳେ ସ୍ନାନ ସାରି ରଥରେ ବସି । ପଥେ ଅକ୍ରୂର ରଥବାହି କସି । ପାରି ହୋଇଣ ଯମୁନା ତୁରିତ । ମଥୁରା ଦାଣ୍ଡେ ହେଲେ ଉପଗତ । ଓହ୍ଲାଇ ରଥରୁ । ଅକ୍ରୂର କହି ଶୁଣ ମହାଜେମରୁ ହେ ॥ ଆଜକ ମୋ ପୁରେ ବିଶ୍ରାମ କର । କାଲି ଭେଟିବ କଂସ ନୃପବର । ହରି ବୋଇଲେ ନ ଯିବୁଁ ତୋ ପୁର । ଜାଣିଲେ କୋପ

କରିବ ଅସୁର । ମୋହିପାଇଁ ମନ୍ତ୍ରୀ । କଂସ ହାତେ ନିଶ୍ଚେ ପାଇବ ଶାସ୍ତି ହେ ॥ ରାଜାର ତୋଷା ମଧୁବନେ ଯାଇଁ । ଆଜ ରଜନୀକି ରହିବ ତହିଁ । ଯାଅ ଅକ୍ରୂର ତୁମ୍ଭ ନିଜ ବାସ । କାଲି ପ୍ରଭାତୁ ଆସ ଆମ୍ଭ ପାଶ । ତୁମ୍ଭ ସଙ୍ଗେ ଯିବା ହେ । ମାମୁଁଙ୍କୁ ଯାଇଁ ସାକ୍ଷାତ କରିବା ହେ ॥ ଘେନି ସମସ୍ତ ଗୋପସୂତ ସଙ୍ଗେ । ମଧୁବନେ କୃଷ୍ଣ ରହିଲେ ରଙ୍ଗେ । ସେଦିନ ନିଶି ନାହିଁ ଆସି ଯାହି । ନିତ୍ୟକର୍ମ ସାରି ସେ ବେନିଭାଇ । ବସେ ରାଜପଥେ ଯେ । କବି ବନମାଳି କହଏ ଗୀତେ ଯେ । ୪ ।



ପଚାରନ୍ତି ବଳରାମ କହରେ କହ୍ନାଇ । କିଏସେ ଆସୁଛି ଦୂରେ ଲୁଗାଭାର ନେଇ । ପଦ । ଦେଖିଲେ ଚକ୍ଷୁ ଦିଶେ ତାର ; ସେସନ ରଜକ ମଦ୍ୟାର ; ରାଜାର ରଜକ ସେ ମୋତେ ଜଣାଇ । ୧ । ଶୁଣ ଭାଇ ହଳଧର, ଆସେ ସେ ଆମ୍ଭ ପାଖର, ପଚାରିଲେ ଜାଣିବ କି ଜାତି ଅଟଇ । ୨ । କଂସର ନିକଟ ଗୋଲ, ସେଠେ ସମୁଦ୍ର କରିଛାଳି. ଦେଖନ୍ତି ତାହେଁ ସକଳ ବଳିଆର କହ୍ନା । ୩ ।



ହାଣିଗଲା ବରଖୋବା ଲୋ ( ବୋଲି ) ହାଣିଗଲା ବର-ଖୋବା । ଉଠା ଭଉଆଣୀ ବସା ଯାଉପାଣି ଅଇଲେ ବେଟିଆ-ଧୋବା ॥ ତୁଉତ ଅଇଲୁ ମୁଣ୍ଡ ଅଇଲା ସପନା ନଦୀକୂଳରେ । ଶୋଯ ଶୋଯାଇଲା ଫୁଲା ବଗୁଲା ନିଗଲା ଦପଳରେ । ଛିଇ ଛିଇ ମଦ ଖାଇବ ନାହିଁ ଲୋ କଳାପାଣି ପରି ଦିଶେ । ସେହି କଳାପାଣି ପେଟରେ ପଡ଼ିଲେ ବଉଦଣ୍ଡି ବନ ଦିଶେ । ଧୋବାଘାଇ ବାଟେ ପଶି ଅଇଲା ଲୋ ଧୋବଣୀ ଯୋଗୁଡ଼ି ଖାଇ । ଧୋବଣୀ ବେକରେ ମଉଳମାଳ ଲୋ ବୋହୁ ପତୁଆଳ ଝିଲା । ୪ ।

[ କୃଷ୍ଣ ଓ ରଜକର ଚଢ଼ା ଉତ୍ତର । ]

କହନ୍ତି କାହ୍ନାଇ ହେ ରଜକ ଭାଇ ଶୁଣ ଆମ୍ଭର ବଚନ । ଯାଉ ଅଛୁ କେଣେ ଆସ ତୁହି ଏଣେ କାହାର ନେଉ ବସନ ରେ । ନାମ ତୋହର କସ । ଫେଡ଼ କହ ଏଥର ସନ୍ଦେଶ ରେ ॥ କଂସର ରଜକ ଶୁଣି ରେ ବାଳକ କାଳକ ଲୁଗା କାଚଇ । ନେଉଛୁ ବସନ ପିନ୍ଧିବେ ରାଜନ ଦେଇ ଆସିବଇଁ ଯାଉଁରେ । କପାଁ ଯିବ ତେଣିକି । ଡାକ ବାଇଆ ହୋଇଲଣି କି ରେ ॥ ରାଜାର ଭଣ୍ଡା ଶୁଣରେ ଅବୁଝା । ପିନ୍ଧିବାକୁ ଦଅ ବାଧ । ସେ ବାସ ପିନ୍ଧିଲେ ସାଜିବ ଆମ୍ଭଙ୍କୁ ଦେଖିବୁଁ ମଉଳା କଂସ ରେ । ଯିବୁଁ ରଙ୍ଗସଭାକୁ । ଦେଖି ଯିବୁ ନାହିଁ ବଳମ୍ଭକୁ ରେ ॥ କୋପଭର ହୋଇ ରଜକ କହଇ ଗଉଡ଼ ଟୋକା ହୋଇ । ମାଇଁକି ହରକୁ ଅନୀତ କରନ୍ତୁ ବନେ ଚରାଇନ୍ତୁ ଗାଈ ରେ । ବାଇ ହେଲୁ ଅଜ୍ଞାନ । ରାଜା ଲୁଗା ପିନ୍ଧିବାକୁ ମନ ରେ । ସା ହୋଇ ଖେଟଖାତ ନ କହ ଏ ରୀତ ଏଷଣି ହୋଇବୁ ନାଶ । ଏତେ କହୁ ହରି ଧାଇଁ ଯାଇଁ କରି ଧଇଲେ ରଜକ କେଶ ଯେ । ଏକ ଗୁପଡ଼ାଘାତେ । ମୁଣ୍ଡ ଛିଣ୍ଡାଇ ଦେଲେ ତୁରତେ ଯେ ॥ ରଜକ ମାରଣ ହରି ସଙ୍କର୍ଷଣ ଚଳଗଲେ ଖଟନ୍ତୁ ନୂର । ଦେଖିଲେ ଆଗରେ ନ୍ରି ବକ୍ର ରଙ୍ଗରେ ଘେନି ଆସେ ଘନସାର ଯେ । କବି କହେ ଏ ରସେ । କୁଜା ମିଳଲି ଶ୍ରୀକୃଷ୍ଣ ପାଶେ ଯେ । ୬ ।

( କଂସର କୁହା । )

ଗଉଡ଼ଟୋକା ହୋଇଲେ କାହ୍ନା ହଟହଟା ' ପଦ । ସ୍ୱର୍ଗ ମର୍ତ୍ତ୍ୟ ରସାତଳ, ଜିଣିଲ ବଳେ ସକଳ, କାଳ ହୋଇଲେ ବାଳକ-ଗୁଲଠା । ନଅାଁ ଗିଲା ଶଅାଁଖିଆ, ଗୋପେ ମାରୁଥିଲେ ହୁଅାଁ, ଖାଉଥିଲେ ଗୋପାଳ ଅ..ଠା । ଗୋପୀଙ୍କ ପାଲଟା ଲୁଗା; ରୈରୀ-ନୀଲେ ପେ ବା...ଡା, ମାଇଁଷଙ୍ଗ ନାଉ ଟେଟେଲ ଅଟା । ମଥୁରାବନେ

ରହି ମୋର,ଛେଛଦଲ ରଜକ ଶିର । ବଇଷ୍ଣବ ବୋଲେ ଗୋପେ ପଠା ॥

( କୃଷ୍ଣଙ୍କୁ ଦେଖି କୁବୁଜାର ଗୀତ । )

ଏ ତ୍ରିଭଙ୍ଗ ଚୂଳିଆ, ହେବ କି ଏହି ଗୋକୁଳକୁଳପାଳିଆ । ପଦ । ଆହା ପୀତବସନ, ଚକ୍ର କରେ ଦହନ, ଗୀତ ଗାଉଛି ବଂଶୀବଦନ । କି ସୁନ୍ଦର,ଦରହାସ୍ ଅଧରେ ଗୁଞ୍ଜିମାଳିଆ ॥ ଥିଲେ ଏ ଗୋପେ ସତେ, ଲଗୁନାହିଁ ପରତେ, ଗୋପ ନିବାସୀଙ୍କର ଭାଗ୍ୟ କି ହେଲ ଏତେ । କଂସଭୟରେ କି ସତେ; ଲୁଚିଥିଲେ ଗୁପତେ ନୀପମୂଳିଆ ॥ କଟିଘଣ୍ଟିଘାଗୁଡ଼ି, ଚଳିଚନ୍ତି କରେ ରଢ଼ି, କିବା ମାର ଡଗର ମର୍ତ୍ତ୍ୟେ ଦେଉଛି ଧାଡ଼ି । ଯୁବତୀ ଜାତି ଗ୍ରୁଢ଼ି ମାତି ହୋଇବେ ଯାର ପଦ ତଳିଆ ॥ ମାଗିଲେ ପୀତବାସ, କରି ଚନ୍ଦନ ବେଶ, ହୋଇବ ମୁଁ ସନ୍ତୋଷ, ବଳିଲଣି ମୋ ଆଶ । ହେବି ଏହାଙ୍କ ଦାସ, ବଇଷ୍ଣବର ଭାଷ, ମୁଁ ପାଗଳିଆ । ୪ ।

[ କୃଷ୍ଣ ଓ କୁବୁଜାର ଚଉ ଉତ୍ତର । ]

ବୋଲନ୍ତି ହରି ଶୁଣ ନାଗରୀ କି ଘେନି ଯାଉ ତୋ ତୁହି । ଶୁଣ ନାଗର ରସସାଗର ଅଙ୍ଗରାଗ ଏ ଅଟଇ । ପଦ । କାହା ନିମନ୍ତେ ନେଉଛ ଏତେ ଯାଅ ମୋତେ କିଛି ଦେଇ । ହୋଇ ସୁବେଶ ଭେଟିବ କଂସ ରାଜାର ଭଗିନୀ ମୁହିଁ (ସୁନ୍ଦରୀ) ଶୁଣି ଏ ବାଣୀ କୁଟୀତରୁଣୀ ଅଙ୍ଗରାଗ ଦେଇ ଦେଇ । ଚନ୍ଦନ ବେଶ କଲ ସନ୍ତୋଷ ମନରେ ହରଷ ହୋଇ । ଦେଖି ଭକତି ସେ ଶିରୀପତି ଚିବୁକେ କର ଲଗାଇ । କଲେ ସୁନ୍ଦର ବରୂପ ତାର ବଇଷ୍ଣବ ଗୀତେ କହି ॥

ମୋହନ ଜାଣ ଏତେ ସୁନ୍ଦର । ଦେଖୁ ଦେଖୁ ମୋତେ କଲ ସୁନ୍ଦର । ପଦ । ନନ୍ଦ କେଉଁ ତପ ଅରଜିଥିଲି କନ୍ଧରେ କାଖରେ

ତୋତେ ଧଇଲା॥ ଇନ୍ଦୀବର ଡୋଳା ଚଳ ମୋ ପ୍ରାଣ । ସୁରତେ ବର୍ଷିବ ଆଜ ଶର୍ବରୀ । ଶ୍ୟାମ ବୋଲନ୍ତି ଯାଅ ବାମା ବାସେ । କଂସ ନାଶି ଆସିବି ତୋର ପାଶେ ॥ ବଇ ବୋଲେ କୁବୁଜାକୁ ବୁଝାଇ । ଧନୁଯଜ୍ଞଶାଳେ ମିଳିଲେ ଯାଇଁ । ୬ ।



( କଂସ )

କେତେ କୁହୁକ ଜାଣେ ନନ୍ଦବେଟାଟା ରେ । ମନ୍ଦମତି ଅନ୍ଧ-ଆଖି ଫିଟାଟା ରେ । ପଦ । ମନ୍ଦର କରେ ଟେକିଲା । କାଳୀୟ ଦର୍ପ ଦଳିଲା । ଦହି ଦୁଧ ଖାଇ ଚୋର ପିଟାଟାରେ ॥ ଶିରେ ଶିଖିପୁଚ୍ଛ ବାନ୍ଧି । ପୀତାମ୍ବର ଖଦ ପିନ୍ଧି । କରେ ଧରିଥାଏ ବାଂଶ ଖେଳୁଆଟାରେ ॥ ବନ୍ଦୀରୁ ପଳାଇ ଗଲା । ନନ୍ଦମନ୍ଦିରେ ରହିଲା । ମାଈଁସଙ୍ଗେ କଲା ପ୍ରୀତି ଧୂର୍ତ୍ତଟାରେ । ୩ । ପଠାଇଲି ଯେତେ ବୀର, ହଟାଇଲା ସେ ମୋହର । ବଇ ଦ୍ରୁତ ବୋଲେ ହେଲା କର୍ଣ୍ଣାଟା ରେ । ୪ ।



[ କୃଷ୍ଣ ଧନୁ ଯଜ୍ଞଶାଳେ ପ୍ରବେଶ ଗୀତ । ]

ଧନୁ ଦେଖି ପଚାରନ୍ତି ହରି ଯେ । ଭାଙ୍ଗିଦେବ ବେଳା ଖଣ୍ଡ କରି ଯେ । ୧ । ଧନୁ ଚଟମଟ ନାଦ ଶୁଣି ଯେ । ଛଟପଟ ହେବ ଭୋଜମଣି ଯେ ।୨। ମନେ ପାଇବ କଂସ ଅସୁର ଯେ । ଶୁଣି ଧନୁ ବିନାଶ ଖବର ଯେ ।୩। କୃଷ୍ଣ ବୋଲନ୍ତି ଶୁଣହେ ଭାଇ ହେ । ଏହି କଂସର ଧନୁ ଅଟଇ ଯେ ।୪। ଯାକୁ ଭାଙ୍ଗି ମଧୁବନେ ଯିବା ଯେ । କାଳି ପ୍ରଭାତୁଁ ପୁଣି ଆସିବା ଯେ ॥ ଏତେ କହି ବେଳାକରେ ଧରି ଯେ । ଭାଙ୍ଗି ବେଳାଖଣ୍ଡ ଦେଲେ କରି ଯେ । ୬ । କୃଷ୍ଣ ମଧୁବନେ ପରବେଶ ଯେ । ତେବେ ଚମକ ଉଠିଲା କଂସ ଯେ ॥ ବଇ ବୋଲେ ହୋଇଲା ଉଜ୍ଜ୍ୱଳ ଯେ । କଂସ ଜାଗିରେ ଦେଖେ ସ୍ୱପନ ଯେ । ୮ ।



କଂସର ବଚନିକା ।

ଓହୋ, କି ଦୁଃସ୍ୱପ୍ନ ଦେଖିଲି ଏପରି ସ୍ୱପ୍ନ ଦେଖିନାହିଁ, ଆଜି ଏପରି କାହିଁକି ହେଲା, ଦେଖିଲି ପ୍ରେତ ସହିତରେ ମୋର ପ୍ରେମାଳାପ, କେତେବେଳେ ଗର୍ଦ୍ଦଭପୃଷ୍ଠେ ଆରୋହଣ; କେତେବେଳେ ଦେଖିଲି ଜଣେ ଲଙ୍ଗଳା ମୁଣ୍ଡରେ ତେଲ ଲଗାଇ ମନ୍ଦାର ଫୁଲ ଗୋଟିଏ ଧରି ମୋ ପାଖକୁ ଆସୁଛି, ଏତ ସବୁ ମୃତ୍ୟୁର ଲକ୍ଷଣ, ଏପରି ସ୍ୱପ୍ନ ମୋତେ କାହିଁକି ଦେଖାଗଲା । ମୋରତ କୃଷ୍ଣଙ୍କ ପୂର୍ବରୁ ପ୍ରାଣରେ ଭୟ ଥିଲା, ସେ ମୋତେ ମାରିବ ବୋଲି କି ଏପରି ହେଉଛି, ପ୍ରଦୀପ କ୍ରମେ ନିସ୍ତେଜ ଦିଶିଲାଣି, ବୃଦ୍ଧ ବୋଧହୁଏ ଆଉ ନାହିଁ, ଏ କଣ ରଣବାଦ୍ୟ ! ସଭାସ୍ଥଳରେ ମୋର ଅପେକ୍ଷାରେ ଥିବେ, ଆଜି ମଲ୍ଲଯୁଦ୍ଧ ହେବ ଲୋକେ ଦେଖିବେ କଂସର ବଳ ବେଶିକି, ଭଗବାନର ବଳ ବେଶି । ଯାଏ ମୋ ଭାଗ୍ୟରେ ଆଉ ନିଦ ନାହିଁ ।

କଂସ ସିଂହାସନ ନିକଟକୁ ଗମନ ।

[ ମାହୁନ୍ତ ଓ କୃଷ୍ଣର ପ୍ରଶ୍ନୋକ୍ତି । ]

ବୋଲନ୍ତି ଅଚ୍ୟୁତ ଶୁଣରେ ମାହୁନ୍ତ ଆଡ଼ ହୁଅ ଛାଡ଼ବାଟ । ନ କର କଠୋଳ ହେଉଛି ଉଛୁର ହୋଇବ ମାମୁଙ୍କ ଭେଟ । ମାହୁନ୍ତରେ । ଡାକଛନ୍ତି କଂସରାଟ ! ୧ । କହଇ ମାହୁନ୍ତ ଶୁଣ ନନ୍ଦସୁତ ଭିତରକୁ ନ ଛାଡ଼ିବି । ଅତିଲୋ ଦେହେ ବଳ ଯାଅ ରେ ଗୋପାଳ କାହିଁପାଇଁ ଆଡ଼ ହେବି । ଗଉଡ଼ ରେ । ରାଜା ଆଜ୍ଞା ଏଥି ଥିବ ।୨। ଆରେ ଆରେ ହସ୍ତୀ ବୋଲଉଛି ଭେଣ୍ଟା ଖାଇ କଂସରାଜା । ଭାତ । ବାଳକ ବିନାଶ କାଳକ ନଲେ କାହୁଁ ପାଇଲି ଏ ଗଞ୍ଜ । ମାହୁନ୍ତରେ । ମୁଁ କହୁଛି ତୋ ହିତ । ୩ । ଗଉଡ଼ ଠୋକାଠା ବଡ଼ି କହୁ ଏ କିହାକ ଗୋପପୁର । ମାଇଁକି ହରିଲୁ ଅନୀତ କରିଲୁ ଘେରିଲୁ ଯମୁନା ତୀର । ଗଉଡ଼ରେ । ଆଜ ତୋ ଇନ୍ଦ୍ରି ସୁନ୍ଦର ॥ ନକର କଠୋଳ ଆରେ ରେ କଠୋଳ ନ ଛାଡ଼ିବୁ

ଯେତେବେଳେ ବାଟ । ଦେଖ ଏହାକ୍ଷଣି ହସ୍ତୀସହ୍ରପୁଣି ଯମଦୂତ ଯିବ ଘଟ ।
ମାହୁନ୍ତ ରେ । ଥ ଉ ତୋ ରାଜା ଆଜ୍ଞା ।୫। ଶୁଣି କୃଷ୍ଣଙ୍କର ରାଗେ
ଉରଜର ହସ୍ତୀ ଚଳାଇ ଧାମନ୍ତି । ମଥୁରା ନାରୀଏ ବୋଇଲେ
କାନ୍ଦନ୍ତି ନେତ୍ରୁ ନୀର ଯାଏ ବହି । ବାହୁନନ୍ତି । କୃଷ୍ଣ ରୂପକୁ
ଅନାଇଁ । ୬ ।



କଂସ ପ୍ରତି ମଥୁରା ନାରୀଙ୍କର ଘୃଣା ।

ମଥୁରା ନାରୀ ସକଳ, କୃଷ୍ଣଙ୍କୁ ଚାହିଁ ହୁଅନ୍ତି ବିକଳ ଯେ । କଳି
ବଚନ ବନ୍ଧୁ ଆକୁଳ । ସୁନ୍ଦରୀଏ । ୧ । କୁନ୍ଦ କରକରଦନା ।
ଜବାଧର ପୂର୍ଣ୍ଣଚନ୍ଦ୍ର ବଦନା ଯେ । ମଦାଳସା ମଦନସଦନା । ସଜ-
ନୀଏ । । ୨ । କେ ବୋଇଲେ ଅନା ଗୋ ଆଳି । ଗହ୍ୱରେ ବାନ୍ଧନ୍ତି
ଫୁଲ ନିଆଳି ଗୋ । ଧନ୍ୟ ଧନ୍ୟ ସେ ଗୋପ ଗୁଆଳି । ସଜନୀ
ଗୋ । ୩ । ଡୋଳ ଧରିଲେ କାଖରେ । ଖେଳ ହୋଇ ଚୁମ୍ବ-
ଦେଲେ ମୁଖରେ ଗୋ । କାଳ କାଟିଲେ କେତେ ସୁଖରେ ।
ସଜନୀଗୋ ॥ କେଉଁ ରମଣୀ କହଇ । ଏତ ନନ୍ଦରାଜା ପୁଅ ନୁହଇ
ଗୋ । ଦେଖି ମାର ମରମେ ଦହଇ । ସଜନୀ ଗୋ । ୫ । କେ
ବୋଇଲେ ମୀନକେତନ । ନାରୀକୁଳ କରିବାକୁ ପତନ ଗୋ ।
ମର୍ତ୍ତ୍ୟେ କରଅଛି ନିକେତନ । ସଜନୀ ଗୋ ।୬। ଯାହା ଉରଜରୁ
ବାସ । ଫେଡ଼ଥିବେ ଧୀରେ ଶ୍ରୀବାସ ଗୋ । ତୁଚ୍ଛ ତାକୁ ବଇକୁଣ୍ଠ
ବାସ । ସଜନୀ ଗୋ ॥ କେ ବୋଇଲେ ପ୍ରୀତି ଆଗରେ । ଲେଡୁଥିବେ
ଯାକୁ ଚନ୍ଦନଗାରେ ଗୋ । ସାର୍ଥକ ତା ଜନମ ସଂସାରେ । ସଜନୀ
ଗୋ ॥ ଏ ବେନି ଯଶୋଦା ଧନ । କେମନ୍ତେ କରିବ କଂସ ନିଧନ
ଗୋ । ଗୋପେ ବଢ଼ିଲେ ରଖି ଗୋଧନ । ସଜନୀ ଗୋ । ୯ ।
କଂସକୁ ହେଉ ମରଣ । ଭୋ ଧର୍ମଦେବତା କର କାରଣ ହେ ।
ବଇଷ୍ଣବ ତୋ ପାଦେ ଶରଣ । ଶ୍ରୀହରି ହେ । ୧୦ ।



ଏହା ଦେଖି ହରି ଧାଇଁ ଯାଇଁ କରି ଧଇଲେ ହସ୍ତୀର ଶୁଣ୍ଢ ଲଣ୍ଠି ହଳପାଣି ଧଇଲେ ତକ୍ଷଣି ଘଡରେ ଯେତେହେଁ ଖୁଆଦଣ୍ଡ । ଘୁରାଇଣ । ପିଟିଲେ ହସ୍ତିର ମୁଣ୍ଡ ॥ ମାହୁନ୍ତ ମାରିଣ ହରି ସଙ୍କର୍ଷଣ ରଙ୍ଗସଭାଠାରେ ବଡେଜ । ଦେଖି ମଲ୍ଲଗଣେ ଧାଇଁଲେ ତକ୍ଷଣେ ଯୁଝିଲେ ଭୀଷଣତେଜେ । କବି ବୋଲେ । ରାମକୃଷ୍ଣ ହସ୍ତେ ମଲେ ॥

---

ଯମୁନା କୂଳଆ କଦମ୍ବ ମୂଳଆ ଫେରିଯାଉ ଫେରିଯାଉ ରେ । ପୀତଦୁକୂଳଆ ବରଜଧୂଳିଆ ଫେରିଯାଉ ଫେରିଯାଉରେ । ଗାଈ ଦୁହାଁଳିଆ ଶିଖଣ୍ଡିଚୂଳିଆ ଯଶୋଦା କୋଳିଆ ଏଡେ ବଡ଼ ଛାଳିଆ ମୁଁ କି ତା ଭୁଲିଆ ଜାଣେ ସେ କାଳିଆ ଫେରିଯାଉ ଫେରିଯାଉ ରେ । ଜଣେ ଜଣେ କରି ପଣେ ପଣେ ସ୍ଥିର, ଢାଳିଲ ଝାଳିଲ ସମର ଭୂମିରେ । ଏଣିକି ଉପଜାପଣ ଜଣାଗଲା ଫେରିଯାଉ ଫେରିଯାଉ ରେ ॥ ଷଣ୍ଡାମର୍ଦ୍ଦି ମାଇଁ ଗଣ୍ଡେ ଚମ୍ପୁଦେଲା, ଶୁଣ୍ଢଧରି ହସ୍ତୀ ମୁଣ୍ଡକୁ ମୋଡ଼ିଲା, ବଇଷ୍ଣବ ଗିରି କନ୍ଦରେ ଡ଼ଗର ଫେରିଯାଉ ଫେରିଯାଉ ରେ । ୩ । —»(❀)«—

କୃଷ୍ଣ ବଳରାମଙ୍କର ମାମୁଁ ପ୍ରତି ।

କେଉଁ ଦୋଷ ଦେଖି, ମାମୁ ଫେରାଇ ଦେଉଛ ମଥୁରାପୁରୁ । ଭଉଣୀର ସୁତ ଭଣଜାଙ୍କୁ ରଥ ପଠାଇ ଆଣିଛ ଗୋପନବରୁ । ପଦ । ମାଇଁ ମାନେ କୋଳ କରିବେ । ନୂଆ ଲୁଗା ପିନ୍ଧାଇ ଦେବେ । ଖାଇବାକୁ ଦେବେ ଡାଲି ସରୁ ଭାତ ରାଇ କରି ଦେବେ ପାଣିକ- ଖାରୁ । ୧ । ଅଜା ମୋର ରଜାର ପିତା । କିଣିଦେବେ ପାଦକୁ ଯୋତା । କଟିକି କିଙ୍କିଣି କିଣିଦେବେ ପୁଣି ରୁଣୁ ଝୁଣୁ ଝୁଣୁ ଶୁଭିବ ଦୂରୁ । ୨ । ପୁଣି ଦେବେ କଣ୍ଠାଇ କିଣି । ଗୋଡ଼କୁ ମୋ ବଳା ବାଜେଣୀ । କାଖେ ଧରି ଆଈ ବୁଲାଇବେ ସାଇ ରୁଷି- ଗଲେ ଓଗାଳିବେ ଆଗରୁ । ୩ । ହେଲା ଆସି ଅଠ ବରଷ, ନ ଦେଖିଲୁ ମାମୁଙ୍କ ଦେଶ । ବଇଷ୍ଣବ ଭାଷ ଅଛି ମୋର ଆଶ; ନ ରହିବ ବୃନ୍ଦାବନ ରଷକରୁ ॥ —»()«—

( ଚାଣୁର ମୁଷ୍ଟିକର ପ୍ରତି କଂସର ଆଦେଶ । )

କଂସ ଓହେ ଚାଣୁର, ମୁଷ୍ଟିକ, ତୁମ୍ଭେମାନେ କଅଣ ଦେଖୁଛ । ଦେଖୁ ୨ ଗଉଡ଼ଟୋକା ଆଏ ମୋର ସର୍ବନାଶ କଲେ; ଏବେ ଦେଖ ତାଙ୍କୁ ଦୟା ମାୟା ଛାଡ଼ି ବେଗି ମାରରେ ଏହାଙ୍କୁ ।

ମୁ—ଆସରେ ଆଜ କର ମଲ୍ଲରଙ୍ଗ ।
କୃ—ତୁମ୍ଭେ ମତ୍ତହସ୍ତୀ ଆମ୍ଭେ ଅଟୁରେ ପତଙ୍ଗ । ୧ ।
ଚା—ଦେଖୁ ୨ ହସ୍ତୀଟାକୁ ବଧିଲୁ ଗୋପାଳ ।
କୃ—ଆପେ ପଡ଼ିମଲା ତାର ପୂରିଥିଲା କାଳ । ୨ ।
ମୁ—ତୁମ୍ଭ ଦୁହିଙ୍କିରେ ଆଜ ପକାଇବୁ ମାରି ।
କୃ—ସର୍ବଦା ମାଡ଼ୁଆ ଆମ୍ଭେ ଗଉଡ଼ ଭଣ୍ଡାରି । ୩ ।
ଚା—ଆସିଛନ୍ତି କେତେ ରାଜା ରଣ ଦେଖିବାକୁ ।
କୃ—ଏଡ଼ିକି ଅନ୍ୟାୟ କେହ୍ନେ ସହିବ ତୁମ୍ଭଙ୍କୁ । ୪ ।
ମୁ—ଆସ ମୃଷ୍ଟ୍ୟାଘାତେ ଏବେ ଚୂରିବ ଶରୀର ।
କୃଷ୍ଣ—ରକ୍ଷାନାହିଁ ମୃତ୍ୟୁମୁଖେ ହୁଅ ଅଗ୍ରସର । ୫ ।
(ଉଭୟ ଯୁଦ୍ଧେ ମଲ୍ଲଙ୍କର ପତନ ଜୟ ଶ୍ରୀକୃଷ୍ଣର ଜୟ ସର୍ବେ)

( କଂସର କୋପ ଉକ୍ତି । )

ଛାଡ଼ରେ ଡଗର ଆଡ଼ ହୁଅ ମୋତେ କାଟିବ ଦେବକୀମୁଣ୍ଡ । ମୋତେ ଛାଡ଼ ରେ । ମୂଢ଼ ବସୁଦେବ ଦୃଢେ ବସିଅଛ କରିବି ମୁଁ ଖଣ୍ଡ ଖଣ୍ଡ । ମୋତେ ଛାଡ଼ ରେ ॥ କୋଡ଼ଟୋଆଟାକୁ ଥୋଡ଼ବର ଘାରେ ଗୋପରେ ନେଇ ଛାଡ଼ିଛ । ମୋତେ ଛାଡ଼ରେ । ତୋହମାଛପର ମୋହ ଦେବ ବେକ ଆଗରେ ମୋର ପଢ଼ିଛ । ମୋତେ ଛାଡ଼ ରେ ।୨। ଯୋଡ଼ା ଯୋଡ଼ା ମଲ୍ଲ ପଡ଼ି କଲବଲ ହୋଇ ଛାଡ଼ିଲେ ପରାଣ । ମୋତେ ଛାଡ଼ରେ । କେଡ଼େବଡ଼ ହାତୀ ଘଡ଼କେ ମାଇଲେ ଘୋଡ଼ାମୁହାଁ ଦୁଇଜଣ । ମୋତେ ଛାଡ଼ରେ । ୩ । ଧଡ଼ପଡ଼ ହୋଇ ଛାତି ପଡ଼ୁଆଇ ଥର ଥର ଥରେ ଦେହ । ମୋତେ ଛାଡ଼

ରେ । ବଇନ୍ଦ୍ର ବୋଲେ ଶ୍ରୀ ଉଭରେ ଡଗର କାଟିବ ନାହିଁ ସନ୍ଦେହ ।
ମୋତେ ଲୁଉରେ । ୪ ।

( ଦେବକୀ ବେଦନ । )

ଭାଇ କ ସ କେଉଁ ଦୋଷ ଜାଣ ମୁହିଁରେ । କାଟିଲୁ ମୋ ଶିର
ଧାର ସେଥିପାଇଁ ରେ । ପଦ । କେତେ ସହି ଗର୍ଭ କଷ୍ଟ ତେବେ ନ
ଗଲା ତୋ ହୃଷ୍ଟ । ଜନ୍ମ କରି ଦେଉ ନ ଦେଲ ନେଇ ରେ । ହୋଇ
ରାଜାର କୁମାରୀ ଭାଇ ଆହୁଁ ତୋ ହାପରି, କାଳିକ ବନ୍ଦୀ ବନ୍ଦୀ-
ଶାଳେ ଥାଇ ରେ । ହାତ ଗୋଡ଼ ଛାଡ଼ିବନ୍ଧ, ବନ୍ଦୀ ହୋଇଲିଣି
ପଦ୍ମ । ଅନ୍ଧପରି ଚନ୍ଦ୍ର ସୂର୍ଯ୍ୟ ଦେଖିନାହିଁରେ । ଧରୁଅଛୁ ତୋର
କର, ବନାଦୋଷେରେ ନ ମାର । ବଇ ବୋଲେ ଚନ୍ଦ୍ର ସୂର୍ଯ୍ୟ
ଛନ୍ତି ଗୃହିଁ ରେ । ୪ ।

( କଂସର କୃଷ୍ଣ ପ୍ରତି ଦୃଷ୍ଟିପାତ । )

ଆସିଲା ଆସିଲା କୃଷ୍ଣ ଆସିଲା ଆସିଲାରେ । ଅନ୍ତୁଡ଼ଶାଳେ ପୂତନା
ଶୋଷିଲା ଶୋଷିଲା ରେ । ପଦ । ଅଘା ବକା ବତ୍ସାସୁର, ଷଣ୍ଢ
ଧେନୁକା ଅସୁର । କେଶୀ ଆରେ ବସ୍ତୁ ସେ ତାଙ୍କୁ ନାଶିଲା ନାଶିଲା
ରେ । ୧ । ପୁଣି ଆସି ମଥୁରାକୁ, ମାଇଲା ମୋ ରଜକକୁ ।
ଧନୁଭାଙ୍ଗି ଯଜ୍ଞଶାଳେ ପଶିଲା ପଶିଲା ରେ । ୨ । ମାଇଲା ଗଜ
ମାହୁନ୍ତ; ମଲ୍ଲଗଣ ହେଲେ ହତ । ଏବେ ମୋତେ କାଳପ୍ରାୟେ
ଦିଶିଲା ଦିଶିଲା ରେ । ୩ । କାହିଁ ଗଲୁ ରେ ଅସୁର ଛାଡ଼ ଆସ
ଗୋପପୁର । ବଇନ୍ଦ୍ର ବ କୃଷ୍ଣରେ ରସିଲା ରସିଲା ରେ । ୪ ।

କୃଷ୍ଣ ରଙ୍ଗମଞ୍ଚରେ ଆରୋହଣ ।

କଂସ ସେ ମୂର୍ତ୍ତି ଦେଖି ତିନି ହୋଇ ତଳେ ପଡ଼ ମୃତ୍ୟୁ ।

ଜୟ ଶ୍ରୀକୃଷ୍ଣରଜୟ । ( ଯବନିକା ପତନ )

Ptd by Nityananda Sahoo A Press Cuttack

# ବିଜ୍ଞାପନ ।

କବି ଶ୍ରୀ ବୈଷ୍ଣବପାଣିଙ୍କ ସୁଆଙ୍ଗ, ଗୀତନାଟ୍ୟ, ଗୀତାଭିନୟ
ଫାର୍ସି ଇତ୍ୟାଦି ଯାହା କି ଆଜପର୍ଯ୍ୟନ୍ତ ଛପାହୋଇ
ବଜାରରେ ସମସ୍ତ ଦୋକାନରେ ମିଳୁଅଛି
ସେ ସମସ୍ତ ପୁସ୍ତକମାନ ଆମ୍ଭ ନିକଟରେ
ବିକ୍ରୟ ନିମିତ୍ତ ରଖିତ ଅଛି ।
ଏବଂ ବଜାର ଅପେକ୍ଷା ସୁବିଧା କମିଶନ
ଦିଏ । ଗ୍ରାହକଗଣ ! ଚେଷ୍ଟା କଲେ ଅନାୟାସେ
ପ୍ରାପ୍ତ ହେବେ । ଅତେବ ମାତ୍ର ପରୀକ୍ଷା ପ୍ରାର୍ଥନୀୟ ।
କେତେକ ପୁସ୍ତକମାନ ନିମ୍ନରେ ଉଲ୍ଲେଖ କରାଗଲା ।

## କବି ଶ୍ରୀ ବୈଷ୍ଣବପାଣିଙ୍କ ବିରଚିତ

| | | | |
|---|---|---|---|
| ଉଙ୍ଗସଭା ସୁଆଙ୍ଗ | ଟ ୦ ।/ | ନଳଦମୟନ୍ତୀ ଗୀତନାଟ୍ୟ | ଟ ୦ । |
| ପ୍ରହ୍ଲାଦଚରିତ ସୁଆଙ୍ଗ | ଟ ୦ ।/ | ରାମବନବାସ [ ,, ] | ଟ ୦ ॥/ |
| ଧ୍ରୁବଚରିତ ସୁଆଙ୍ଗ | ଟ ୦ ।/ | ରାବଣବଧ ,, | ଟ ୦ ॥/ |
| ରତ୍ନମାଳା ସୁଆଙ୍ଗ | ଟ ୦ /୬ | ମାଧବସୁଲୋଚନା ,, | ଟ ୦ ॥/ |
| କୀଚକବଧ ସୁଆଙ୍ଗ | ଟ ୦ /୬ | ସ୍ୱର୍ଣ୍ଣସେମିରା ,, | ଟ ୦ ॥/ |
| ଜୟନ୍ତଜୟପାଳ ସୁଆଙ୍ଗ | ଟ ୦ ।/ | କାର୍ତ୍ତବୀର୍ଯ୍ୟ ସଂହାର ,, | ଟ ୦ ॥/ |
| ଆଦ୍ୟକାଣ୍ଡ ସୁଆଙ୍ଗ | ଟ ୦ ।/୬ | ରାସଲୀଳା ନାଟକ | ଟ ୦ ॥/ |
| ନଟେଶ୍ୱର ସୁଆଙ୍ଗ | ଟ ୦/ | ଫାର୍ସି ଲହରୀ | ଟ ୦ ।/ |

ଏହା ଛଡ଼ା ନାନାପ୍ରକାର ସୁଆଙ୍ଗ, ଫାର୍ସି ଇତ୍ୟାଦି ମିଳେ ।

## ପ୍ରାପ୍ତିସ୍ଥାନ ।— ଶ୍ରୀ ଗୋବିନ୍ଦ ସାହୁ ।

ବାଲୁବଜାର—ବଳୋଦବହାର
ପୋଃ ଅଃ ଗ୍ରନ୍ଥଚୌକ । କଟକ ।